ISSN: 2456-9194, Vol. III, Issue. IV, March 2020


# ପ୍ରତ୍ୟୟ

**(Journal of Odia Language, Culture and Science)**

JournalHomepage:http://cphfs.in/research.php




# ପ୍ରଥମ ଓଡ଼ିଆ ଉପନ୍ୟାସ ପଦ୍ମମାଳୀ


**ରାଜେଶରାଜ ସ୍ୱାଇଁ**

ଗବେଷକ, ସ୍ନାତକୋତ୍ତର ଓଡିଆ ଭାଷା-ସାହିତ୍ୟ ବିଭାଗ,

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର – ୭୫୧୦୦୪

E-mail: rajeshrajswain36@gmail.com



*ସାରମର୍ମ : ଊନବିଂଶ ଶତାବ୍ଦୀକୁ ଓଡ଼ିଆ ଉପନ୍ୟାସର ଆଦ୍ୟ ସମୟ । ଏହା ପରଠାରୁ ଓଡ଼ିଆ ଉପନ୍ୟାସ ବହୁ ବାଦବିବାଦ ଓ ଦୀର୍ଘପଥକୁ ଅତିକ୍ରମ କରି ସାଂପ୍ରତିକ ସ୍ଥିତିରେ ପହଞ୍ଚିଛି । ଅନେକ ଔପନ୍ୟାସିକ ଏହାକୁ ପୂର୍ଣ୍ଣାଙ୍ଗ ରୂପ ଦେବାକୁ ଚେଷ୍ଟା କରି ସମୟସ୍ରୋତରେ ହାରମାନିଛନ୍ତି । ଏହାର କାରଣ, ଉପନ୍ୟାସର ସଂଜ୍ଞା, ସ୍ୱରୂପ ଅନୁଯାୟୀ କିଛି ଲେଖା ଏହାର ପର୍ଯ୍ୟାୟବାଚୀ ହୋଇନାହିଁ ଏବଂ ଦ୍ୱିତୀୟତଃ କିଛି ଉପନ୍ୟାସ ଅସଂପୂର୍ଣ୍ଣ ହେତୁ ଉପନ୍ୟାସର ମର୍ଯ୍ୟାଦା ହାସଲ କରିପାରିଲେ ନାହିଁ । ୧୮୮୮ ମସିହାରେ ରଚିତ 'ପଦ୍ମାବଳୀ' ଉମେଶ ଚନ୍ଦ୍ର ସରକାରଙ୍କ ଓଡ଼ିଆ ଉପନ୍ୟାସ ଜଗତ ପାଇଁ ଏକ ଅତୁଳନୀୟ ଅବାଦନ ଏବଂ ଏହାକୁ ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ କହିବା ପଛରେ ଅନେକ ଯୁକ୍ତି ମଧ୍ୟ ରହିଛି ।*

*ପ୍ରମୁଖ ଶବ୍ଦାବଳୀ : ଓଡ଼ିଆ ଉପନ୍ୟାସ, ଅସଂପୂର୍ଣ୍ଣ ଉପନ୍ୟାସ, ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ, ପଦ୍ମମାଳୀ ।*


## I. ଉପକ୍ରମ

ଊନବିଂଶ ଶତାବ୍ଦୀର ଶେଷ ଭାଗ ଓଡ଼ିଆ ଉପନ୍ୟାସର ଆଦ୍ୟଯୁଗ । ଭାରତୀୟ ସାହିତ୍ୟର ବିଭିନ୍ନ ଭାଷାର ପ୍ରଭାବରେ ଓଡ଼ିଶାରେ ଉପନ୍ୟାସର ଉନ୍ମେଷ ଘଟିଲା । ଏହି ସମୟରେ ଯେ ଓଡ଼ିଆ ଉପନ୍ୟାସର ଜନ୍ମଜାତକ ପ୍ରସ୍ତୁତ ହେଲା, ତାହାନୁହେଁ; ବରଂ ଏହାର ପ୍ରାକ୍ ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଥିଲା ବହୁ ବର୍ଷ ପୂର୍ବରୁ । ଆଧୁନିକ ଉପନ୍ୟାସର ବିଧିବଦ୍ଧ ଜନ୍ମ ପୂର୍ବରୁ ଓଡ଼ିଆ ସାହିତ୍ୟରେ ବହୁ କାହାଣୀ, ଲୋକକଥା, ଗଳ୍ପ ପ୍ରଭୃତି ଗଦ୍ୟ ସୃଷ୍ଟି ହୋଇଥିଲା ।

## II. ଓଡ଼ିଆ ଉପନ୍ୟାସ ଓ ପଦ୍ମମାଳୀ

ଓଡ଼ିଆ ସାହିତ୍ୟରେ ଉନ୍ନତ ଗଦ୍ୟସୃଷ୍ଟି ଓ ଉପନ୍ୟାସ ରଚନା ଅନ୍ୟ ଏକ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା ଊନବିଂଶ ଶତାବ୍ଦୀର ଅଷ୍ଟମ ଦଶକ । ୧୮୦୩ ଖ୍ରୀ.ଅ.ରେ ଓଡ଼ିଶାର ପରାଧୀନତା, ୧୮୬୬ରେ ନ'ଅଙ୍କ ଦୁର୍ଭିକ୍ଷ, ପ୍ରତିବେଶୀ ବଙ୍ଗାଳୀମାନଙ୍କଦ୍ୱାରା ଓଡ଼ିଆ ଭାଷା ଓ ସାହିତ୍ୟ ବିରୋଧରେ ରୀତିମତ ଷଡ଼ଯନ୍ତ୍ର ପ୍ରଭୃତି ଘାତପ୍ରତିଘାତ ସତ୍ତ୍ୱେ ଓଡ଼ିଶାରେ ଏକ ଉନ୍ନତ ତଥା ଦୃଢ଼ ସାଂସ୍କୃତିକ ଚେତନାର, ପ୍ରସାରପାଇଁ ଏହି ସମୟରେ ପତ୍ରପତ୍ରିକାଗୁଡ଼ିକର ପ୍ରୟାସ ଆରମ୍ଭ ହୋଇଥିଲା । ସମାସାମୟିକ ଜୀବନ ଓ ସମାଜର ବାସ୍ତବଚିତ୍ର, ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତାବହ ରୂପେ ପତ୍ରିକା ସବୁ ନିଜର ଦାୟିତ୍ୱ ସଂପାଦନ କରିଥିଲେ ହେଁ ଉପନ୍ୟାସ ରଚନା ପାଇଁ ଏଗୁଡ଼ିକ ବଳିଷ୍ଠ ପଦକ୍ଷେପ ନେଇନଥିଲେ। (୧)

ସାଂସ୍କୃତିକ ସଂଗଠନ, ପତ୍ରପତ୍ରିକାର ଭୂମିକା ଆଧୁନିକ ଗଦ୍ୟ ରଚନାପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲେ । ଆଧୁନିକ ଗଦ୍ୟ ସୃଷ୍ଟି ପାଇଁ ପୂର୍ବର ଭାବାବେଗ ଓ ଭବିଷ୍ୟତର ଆହ୍ୱାନରେ ଉପନ୍ୟାସ ରଚନା ଏକ ସାର୍ଥକ ରୂପ ପରିପ୍ରକାଶ କଲା । ୧୮୫୨ ମସିହାରେ ଇଂରାଜୀ ମହିଳା 'ହାନୀ କାଥେରିନ୍ ମ୍ୟୁଲେସନ'ଙ୍କଦ୍ୱାରା ବଙ୍ଗଳା ଭାଷାରେ 'ଫୁଲମନି ଓ କରୁନାର ବିବରନ୍' ରଚିତ ହୋଇଥିଲା । ୧୮୭୧ ମସିହାରେ ଏହାର ଓଡ଼ିଆ ରୂପାନ୍ତର 'ଫୁଲମଣୀ ଓ ବିବରଣୀ' ରେଭେରେଣ୍ଡ ଷ୍ଟିବିନ୍ସନଙ୍କଦ୍ୱାରା ପ୍ରକାଶିତ ହୋଇଥିଲା । ତେବେ ଏହା ସେତେବେଳେ ଧର୍ମପ୍ରଚାର ପାଇଁ ଉଦ୍ଦିଷ୍ଟ ଥିଲା । ସାହିତ୍ୟର ମୂଲ୍ୟବୋଧ ଅପେକ୍ଷା ଏଥିରେ ଧର୍ମ ପ୍ରଚାରର ଲକ୍ଷ୍ୟ ଅଧିକ ଥିଲା। କିନ୍ତୁ ଏହା ସତ୍ତ୍ୱେ ରଚନାଶୈଳୀ, କଥନଭଙ୍ଗୀ ଓ ଭାଷା ପରିପାଟୀ ଦୃଷ୍ଟିରୁ ଏହାକୁ ଆନେକ ଆଲୋଚକ ଉପନ୍ୟାସର ମର୍ଯ୍ୟାଦା ଦେଲେ । କେତେକ ଉକ୍ତ ପୁସ୍ତକକୁ ତେଣୁ ଓଡ଼ିଆ ଭାଷାର ପ୍ରଥମ ଉପନ୍ୟାସ ଭାବେ ଅଭିହିତ କଲେ । ଅପରପକ୍ଷେକିନ୍ତୁ ଅନେକ ଯୁକ୍ତି ବାଢ଼ିଲେ ଯେ, ଏହା ଏକ ଅନୁଦିତ କୃତି । ମୌଳିକ ରଚନା ନୁହେଁ । ଏ ସମ୍ପର୍କରେ ସାହିତ୍ୟିକ, ସମାଲୋଚକ ଡଃ କୃଷ୍ଣଚରଣ ବେହେରା ଯଥାର୍ଥ ମତ ଉପସ୍ଥାପନ କରି କହିଛନ୍ତି – "ମାତ୍ର ଏହାର ଓଡ଼ିଆ ଅନୁବରଦ ଭାଗ୍ୟରେ ବୋଧହୁଏ, ଗ୍ରୀକ୍ ପୁରାଣ ପରିକଳ୍ପିତ ଦେବରାଜ ଜିଉସଙ୍କର କନ୍ୟା ସେହି ନ'ଜଣ 'ମୁଉଜ୍'ଙ୍କର (Muse) ମାନ୍ୟତା ନାହିଁ, ରହିଛି ରୂପ-ଗୁଣରେ ସ୍ୱୀକୃତି ଲାଭ କରିନଥିବା ବିଚାରୀ 'ସିଣ୍ଡେରେଲା'ର (Cinderella) ଅପବାଦ ।"(୨)

'ଇଟାଲୀୟ ଯୁବା' କାହାଣୀରେ କବି ରାଧାନାଥ ପ୍ରଥମେ 'ଉପନ୍ୟାସ' ଶବ୍ଦ ବ୍ୟବହାର କରିଛନ୍ତି । ଉପନ୍ୟାସର ମୂଳତତ୍ତ୍ୱବି ଏହିଠାରେ ଦେଖିବାକୁ ମିଳେ । କାହାଣୀ, ରଚନାଶୈଳୀ, ଘଟଣାବିନ୍ୟାସ ଦୃଷ୍ଟିରୁ ପ୍ରତ୍ୟେକଟି ଉପନ୍ୟାସର ଝଲକ ଏଥିରେ ଦେଖାଯାଏ । ଓଡ଼ିଆ ଉପନ୍ୟାସ ସାହିତ୍ୟ ଇତିହାସରେ 'ପ୍ରଣୟର ଅଦ୍ଭୁତ ପରିଣାମ' ଓ 'ଇଟାଲୀୟ ଯୁବା'କୁ ଉପନ୍ୟାସର ମର୍ଯ୍ୟାଦା ଦିଆନଗଲେ ମଧ୍ୟ ନିଃସନ୍ଦେହରେ କୁହାଯାଇପାରେ ଯେ, ଉପନ୍ୟାସ ସୃଷ୍ଟିର ଆଦ୍ୟ କାଳରେ ରଚିତ ରୋମାନ୍ସଧର୍ମୀ ପାଇଁ କବି ରାଧାନାଥ ହିଁ ପଥ ଦେଖାଇଛନ୍ତି । (୩)

## III.ଉପନ୍ୟାସ ସୃଷ୍ଟିର ପ୍ରାଥମିକ ପ୍ରୟାସ

୧୮୭୮ ମସିହାରେ ରାମଶଙ୍କର ରାୟଙ୍କ 'ସୌଦାମିନୀ' ଉତ୍କଳମଧୁପ ପତ୍ରିକାରେ ଧାରବାହିକ ଭାବେ ପ୍ରକାଶ ପାଇଥିଲା, କିନ୍ତୁ ଏହା ଅସଂପୂର୍ଣ୍ଣ ରହିଯିବାରୁ ଏହା ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସର ମର୍ଯ୍ୟାଦା ହାସଲ କରିପାରିନଥିଲା । ସ୍ୱର୍ଗୀୟ ରାମଶଙ୍କର ରାୟ ଯେତେବେଳେ କୋଡ଼ିଏ ବର୍ଷ ବୟସରେ କଟକ ରେଭେନ୍ସା କଲେଜରେ ପଢୁଥିଲେ, ସେତେବେଳେ 'ଉତ୍କଳ ମଧୁପ' ପତ୍ରିକାରେ ଧାରାବାହିକ ଭାବରେ ଏହି ଉପନ୍ୟାସ ପ୍ରକାଶ କରିଥିଲେ । 'ସୌଦାମିନୀ'ର ତିରିଶ ଗୋଟି ପରିଚ୍ଛେଦ 'ମଧୁପ'ରେ ପ୍ରକାଶ ପାଇଥିଲା । ଏହାର କାହାଣୀ ବା କଥାବସ୍ତୁ ଇତିହାସରୁ ଗ୍ରହଣ କରାଯାଇଛି । ସୁଲତାନ ଆଲ୍ଲାଉଦ୍ଦିନ୍ ଖିଲିଜଙ୍କର ଚିତୋର, ଉଜ୍ଜୟିନୀ ଆଦି ଆକ୍ରମଣ ଓ ଅଧିକାର (୧୩୦୩-୧୩୦୫) ବିଷୟ ଏଥିରେ ବର୍ଣ୍ଣିତ ହୋଇଛି ।

'ସୌଦାମିନୀ' ସମ୍ପର୍କରେ ନିଜେ ରାମଶଙ୍କର ଆପଣା ଗ୍ରନ୍ଥାବଳୀର ଭୂମିକାରେ ଉଲ୍ଲେଖ କରିଛନ୍ତି – "ସୌଦାମିନୀ" ଉପନ୍ୟାସ ଶେଷ ନୋହୁଣୁ ପ୍ରତିକାଟି ଗ୍ରାହକମାନଙ୍କ ରୀତିମତେ ଦେୟ ଆଦାୟ ନ ଦେବା ଯୋଗୁଁ କାଳ କବଳରେ ପଡ଼ିଥିଲା । ମୁଁ ତତ୍କାଳୀନ ସ୍କୁଲ ବିଭାଗୀୟ ଡେପୁଟି ଇନ୍ସପେକ୍ଟରଙ୍କୁ ଉପନ୍ୟାସ ଖଣ୍ଡିକ ଦେଖାଇଥିଲି - ଆଶା ଥିଲା ଯେ ତାହା ବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ଗୃହୀତ ହେଲେ ବ୍ୟୟଭାର ବହନ କରି ପୁସ୍ତକାକାରରେ ଛପାଇବି କାରଣ ସାଧାରଣ ପାଠକର ଅଭାବ ହେତୁ ଖର୍ଚ୍ଚ କରି ଛାପା କରିବା ବୃଥା । ଡେପୁଟି ଇନ୍ସପେକ୍ଟର ମହାଶୟ ପୁସ୍ତକ ରଚନାର ଭୂୟସୀ ପ୍ରଶଂସା କରି ଉପନ୍ୟାସ ପାଠ୍ୟ-ପୁସ୍ତକ ହୋଇ ନପାରେ ବୋଲି ନିରାଶ କରିବାରୁ ମୁଁ ତାହା ପୁସ୍ତକାକାରରେ ଛାପା କରାଇବାକୁ ସାହାସୀ ହୋଇନାହିଁ ଓ ତହିଁରେ ଶେଷାଂଶ କାଳକ୍ରମେ ହଜିଗଲା ।"(୪) ତେଣୁ ଆମ ଉପନ୍ୟାସ ସୃଷ୍ଟିର ପ୍ରାଥମିକ ପ୍ରୟାସ ପୂର୍ଣ୍ଣତଃ ଫଳପ୍ରସୂ ହୋଇପାରିଲା ନାହିଁ; ସୌଦାମିନୀ ଅସପୂର୍ଣ୍ଣ ଅବସ୍ଥାରେ ରହିଗଲା ।

ରାମଶଙ୍କର ରାୟ ଆଉ ଦୁଇଖଣ୍ଡି ଉପନ୍ୟାସ ରଚନାରେ ହାତ ଦେଇଥିଲେ । 'ବିବାସିନୀ' ୧୮୯୧ ମସିହାରେ ଏବଂ 'ଉନ୍ମାଦିନୀ' ୧୮୯୩ ମସିହାରେ ପ୍ରକାଶ ଲାଭ କରିଥିଲା । 'ସୌଦାମିନୀ' ସଦୃଶ ରାମଶଙ୍କରଙ୍କ ରଚିତ 'ଉନ୍ମାଦିନୀ' ଉପନ୍ୟାସଟି ଅସଂପୂର୍ଣ୍ଣ ଏବଂ ବର୍ତ୍ତମାନ ଦୁଷ୍ପ୍ରାପ୍ୟ। ୧୮୯୩ ମସିହା ଅଗଷ୍ଟ ମାସରେ କଟକରୁ ପ୍ରକାଶିତ ସୁପରିଚିତ 'ଇନ୍ଦ୍ରଧନୁ' ଅନିୟମିତ ଭାବରେ ୧୮୯୭ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା ଏବଂ ପତ୍ରିକାଟି ବନ୍ଦ ହୋଇଯିବା ସଙ୍ଗେ ସଙ୍ଗେ ଉପନ୍ୟାସ ଲେଖା ମଧ୍ୟ ରହିତ ହୋଇଯାଇଥିଲା ।

'ଅନାଧିନୀ' ଉପନ୍ୟାସ ସୃଷ୍ଟିର ଅନ୍ୟ ଏକ ପ୍ରାଥମିକ ପ୍ରୟାସ । ୧୮୮୫ ମସିହା ଜାନୁଆରୀ ମାସରେ କଟକ ପ୍ରିଣ୍ଟିଂ କମ୍ପାନୀରେ ମୁଦ୍ରିତ ମାସିକ ସାହିତ୍ୟ ପତ୍ରିକା 'ପ୍ରଦୀପ'ରେ ଧାରାବାହିକ ଭାବରେ ଉପନ୍ୟାସଟିର ପାଞ୍ଚଗୋଟି ପରିଚ୍ଛେଦ ପ୍ରକାଶ ପାଇଥିଲା । ସମ୍ଭବତଃ ପତ୍ରିକା ପ୍ରକାଶ ଅଳ୍ପକାଳ ପରେ ବନ୍ଦ ହୋଇଯିବାରୁ 'ଅବାଧିନୀ' ଅସଂପୂର୍ଣ୍ଣ ହୋଇରହିଗଲା । ଏହାର ଲେଖକ 'ଶ୍ରୀ' ଛଦ୍ମନାମରେ ନିଜକୁ ଚିହ୍ନିତ କରିଛନ୍ତି । ଉକ୍ତ 'ଶ୍ରୀ' ସେହି 'ପ୍ରଦୀପ' ପତ୍ରିକାରେ 'ମଠର ସମ୍ବାଦ' ଶୀର୍ଷକ ଏକ ବଡ଼ ଗଳ୍ପ ବା ରମ୍ୟରଚନାରେ ଛଅଗୋଟି ପରିଚ୍ଛେଦ ପ୍ରକାଶ କରିଥିଲେ । କେତେକ ସମାଲୋଚକ 'ମଠର ସମ୍ବାଦ'କୁ ଉପନ୍ୟାସ ଆଖ୍ୟା ଦିଅନ୍ତି । କିନ୍ତୁ ଉପନ୍ୟାସ-ସୁଲଭ ବିସ୍ତୀର୍ଣ୍ଣ ଗଳ୍ପ ଗୁମ୍ଫନ ବା ଘଟଣା ବର୍ଣ୍ଣନା ଏଥିରେ ନାହିଁ ।'(୬)

## IV.ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ ପଦ୍ମମାଳୀ

'ପଦ୍ମମାଳୀ' ଆମ ସାହିତ୍ୟରେ ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ। ୧୮୮୮-୮୯ ମସିହାରେ କଟକ ପ୍ରିଣ୍ଟିଂ କମ୍ପାନୀରୁ ଏହା ପ୍ରକାଶିତ ହୋଇଥିଲା । ଏହାର ଲେଖକ ଶ୍ରୀ ଉମେଶ ଚନ୍ଦ୍ର ସରକାର ପ୍ରାୟ ୩୨ ବର୍ଷ ବୟସରେ ଏହା ରଚନା କରିଥିଲେ । ପଦ୍ମମାଳୀର ବିଷୟବସ୍ତୁ ଐତିହାସିକ । ୧୮୩୫ ମସିହାରେ ସଂଘଟିତ ଗଡଜାତ ରାଜ୍ୟ ନୀଳଗିରିର ଘଟଣା ଅବଲମ୍ବନରେ ଏହା ରଚିତ ହୋଇଛି । ସ୍ୱୟଂ ଲେଖକଙ୍କ ଭାଷାରେ –"ଐତିହାସିକ ଘଟଣାବଲମ୍ବିତ ହୋଇ କୌଣସି ଉପନ୍ୟାସ ଉତ୍କଳ ଭାଷାରେ ରଚିତ ହୋଇଥିବାରୁ ଆମ୍ଭଙ୍କୁ ଜଣାନାହିଁ । ଉତ୍କଳ ଦେଶର ଇତିହାସ ପର୍ଯ୍ୟାଲୋଚନା କଲେ ଭାବୁକ ଯୁବକ ଐତିହାସିକ ଉପନ୍ୟାସ ଲେଖିବାକୁ ଉକରଣର ଅଭାବ ଦେଖିବେ ନାହିଁ । ଆମ୍ଭେ କେବଳ ଏହି କ୍ଷୁଦ୍ର ଆୟତନ ଓ ଅପେକ୍ଷାକୃତ ଅଖ୍ୟାତନାମା ରାଜ୍ୟର ସ୍ୱଳ୍ପବ୍ୟାପୀ ଘଟଣାକୁ ଅବଲମ୍ବନ ଏ ଗ୍ରନ୍ଥ ରଚନା କରୁଅଛୁଁ ।"(୭) (ପ୍ରଥମ ସଂସ୍କରଣ, ଭୂମିକା, ଅକ୍ଟୋବର-୧୮୮୮)

'ପଦ୍ମମାଳୀ' ଲେଖିବାର ପ୍ରାୟ ୨୦ ବର୍ଷ ପରେ ଉମେଶଚନ୍ଦ୍ର ସରକାର 'କେନ୍ଦୁଝର ବିଦ୍ରୋହ' ରଚନା କରିଥିଲେ । ତଥାପି ଏହି କୋଡ଼ିଏ ବର୍ଷକାଳ ମଧ୍ୟରେ ତାଙ୍କର ଉପନ୍ୟାସ ରଚନାଶୈଳୀରେ କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ହୋଇନାହିଁ । 'ପଦ୍ମମାଳୀ' ଓ 'କେନ୍ଦୁଝର ବିଦ୍ରୋହ'ର ଘଟଣା-ଚୟନ ବା ଗଳ୍ପଗୁମ୍ଫନ ମଧ୍ୟରେ କେତେକ ସାଦୃଶ୍ୟ ପରିଲକ୍ଷିତ ହୁଏ । ଉଭୟରେ କୂଟଚକ୍ରାନ୍ତ, ମେଳି ଓ ବିଦ୍ରୋହର ଚିତ୍ର ପରିସ୍ଫୁଟ ଅବଶ୍ୟ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ । ଉଭୟତ୍ର ରୋମାଞ୍ଚକର ପରିବେଶ, ଦୁଃସାହସିକ ବୀରତ୍ୱପୂର୍ଣ୍ଣ କାର୍ଯ୍ୟାବଳୀ ସନ୍ନିବେଶିତ କରାଯାଇଛି । ଏହି ପରିପ୍ରେକ୍ଷୀରେ ଉଭୟ ଉପନ୍ୟାସରେ ଅଭିଜାତ ଶ୍ରେଣୀର ପ୍ରେମୋପାଖ୍ୟାନ ସୃଷ୍ଟି କରାଯାଇଛି । ବସ୍ତୁତଃ 'ପଦ୍ମମାଳୀ' ସଦୃଶ 'କେନ୍ଦୁଝର ବିଦ୍ରୋହ' ମଧ୍ୟ 'An Historical Romance of the Orissa Tributary Mehals' ଅଥବା 'ଓଡ଼ିଶା ଗଡ଼ଜାତ ମାହାଲର ଏକ ଐତିହାସିକ ଉପନ୍ୟାସ ।(୮)

କେତେକ ଆଲୋଚକ 'ବିବାସିନୀ'କୁ ପ୍ରଥମ ଉପନ୍ୟାସ ଭାବରେ ଦାବି କଲେ । ଏପରକି ସ୍ୱୟଂ ଲେଖକ ନିଜ ଗ୍ରନ୍ଥାବଳୀର 'ମୁଖବନ୍ଧ'ରେ ଲେଖିଥିଲେ –"ବିବାସିନୀ ଓଡ଼ିଶାର ପ୍ରଥମ ଉପନ୍ୟାସ ତାହା ସୁପରିଚିତ ଏବଂ କଲିକତାଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ବିଦ୍ୟାଳୟାଦିର ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଛି ।" ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ ରାମଶଙ୍କର ପ୍ରଥମେ

ଓଡ଼ିଆ ଉପନ୍ୟାସ ଲେଖାରେ ହାତ ଦେଇଥିଲେ । ଯାହା କହନ୍ତି ଉପନ୍ୟାସ ଲେଖାରେ ସେ ଖଡ଼ି ଛୁଇଁଥିଲେ । ବ୍ୟାସକବି ଫକୀରମୋହନ ମଧ୍ୟ 'ଉତ୍କଳ ଭ୍ରମଣ'ରେ ରାମଶଙ୍କରଙ୍କ ସମ୍ପର୍କରେ ଲେଖିଛନ୍ତି –

"ହେ ରାମଶଙ୍କର ମୋର ମାନୁଛି ମନକୁ,
ହୋଇପାରେ ଭାଇ ତୁମେ ଗଭୀର ପଛକୁ ।
ପ୍ରଥମ ନାଟକ ଆଉ ନଭେଲର ଲେଖା,
ତୁମ୍ଭଠାରେ ପ୍ରଥମରେ ହୋଇଥିଲା ଦେଖା ।"

ସୁତରାଂ ହୁଏତ ରାମଶଙ୍କରଙ୍କୁ ପ୍ରଥମ ଔପନ୍ୟାସିକ ଭାବେ ଗ୍ରହଣ କରାଯାଇପାରେ; ମାତ୍ର ତାଙ୍କର ଉପନ୍ୟାସ 'ପ୍ରଥମ' ଭାବେ ଗ୍ରହଣୀୟ ନୁହେଁ । ରାମଶଙ୍କର ରାୟ 'ବିବାସିନୀ'କୁ ପ୍ରଥମ ଉପନ୍ୟାସ ଭାବେ ଦାବି କରୁଥିବାବେଳେ ଏ ପରିପ୍ରେକ୍ଷୀରେ ତାଙ୍କ ଭାଇ ତଥା ଉତ୍କଳ ଦୀପିକାର ସଂପାଦକ ଗୌରୀଶଙ୍କର ରାୟଙ୍କ ମତାମତ ପ୍ରଣିଧାନ୍ୟଯୋଗ୍ୟ । ସେ 'ପଦ୍ମମାଳୀ'କୁ ପ୍ରଥମ ଉପନ୍ୟାସ ଆଖ୍ୟା ଦେଇଛନ୍ତି ।

## V. ଉପସଂହାର

ପ୍ରାୟ ପ୍ରତ୍ୟେକ ଭାଷାରେ 'ପ୍ରଥମ ଉପନ୍ୟାସ' ଏକ ଅସମାହିତ ପ୍ରଶ୍ନ । ଓଡ଼ିଆ ଭାଷା ମଧ୍ୟ ଏହି ବାଦବିବାଦରୁ ମୁକ୍ତି ପାଇନାହିଁ । ନାନା ମୁନିଙ୍କ ମତ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ବି ପ୍ରଯୁଜ୍ୟ ହୋଇଛି । ଏହାର କାରଣ ହେଲା ଉପନ୍ୟାସର ସଂଜ୍ଞା, ସ୍ୱରୂପ ଅନୁଯାୟୀ କିଛି ଲେଖାନାହିଁ ଓ ଦ୍ୱିତୀୟ କଥା ହେଲା କିଛି ଉପନ୍ୟାସ ଅସଂପୂର୍ଣ୍ଣ ହେତୁ 'ଉପନ୍ୟାସ'ର ମର୍ଯ୍ୟାଦା ହାସଲ କରିପାରିଲା ନାହିଁ । ୧୮୮୮ ମସିହାକୁ ଓଡ଼ିଆ ଉପନ୍ୟାସର ଆଦ୍ୟ ଉନ୍ମେଷ କାଳ ଓ 'ପଦ୍ମମାଳୀ'କୁ ପ୍ରଥମ ଉପନ୍ୟାସ ଭାବେ ସ୍ୱୀକୃତି ସତ୍ତ୍ୱେ ଏହାକୁ କେନ୍ଦ୍ରକରି ମତ ଦ୍ୱୈଧ ଦେଖାଦେଇଛି । ଓଡ଼ିଆ ଉପନ୍ୟାସର ସୃଷ୍ଟି କାଳରୁ ନେଇ ସାହିତ୍ୟ ଜଗତରେ ବହୁ ପାଟିତୁଣ୍ଡ ହୋଇଯାଇଛି । ସେ ଯାହା ହେଉ ନା କାହିଁକି, ଓଡ଼ିଆ ଉପନ୍ୟାସର ରଚନା କାଳ କିନ୍ତୁ କେତେ ଶହ କାଳ ବର୍ଷ ତଳର କଳା ନୁହେଁ । ୧୮୮୮ ମସିହାକୁ ହିଁ ଅନେକ ପ୍ରଥମ ଉପନ୍ୟାସର କାଳ ବୋଲି ନିର୍ଣ୍ଣୟ କରିଛନ୍ତି । ତଥାପି ଅନ୍ୟ କେତେକଙ୍କ ମତ ହେଲା, ଉପନ୍ୟାସର ଇତିହାସ ସଠିକ୍ ଆଲୋଚନା ହୋଇନାହିଁ । ଏହିପରି ସ୍ଥଳେ ଆମକୁ ନାନା ବିବାଦ ଓ ଆଶଙ୍କା ମଧ୍ୟରେ ଏ ସମ୍ପର୍କରେ ଆଲୋଚନା କରବାକୁ ପଡୁଛି । ଯେଉଁ ସମୟରେ ଅର୍ଥାତ୍ ୧୮୮୮ ମସିହା ବେଳକୁ ଯେତେବେଳେ ଉମେଶଚନ୍ଦ୍ର ସରକାର ଉପନ୍ୟାସ ରଚନାରେ ମନୋନିବେଶ କରିଥିଲେ, ସେତେବେଳକୁ ବଙ୍କିମଚନ୍ଦ୍ରଙ୍କ ଶ୍ରେଷ୍ଠ ଉପନ୍ୟାସ 'ଆନନ୍ଦମଠ', କବିତା 'ବନ୍ଦେମାତରଂ' ଚହଳ ପକାଇଥିଲା । 'ପଦ୍ମମାଳୀ'ରେ ସେହିଭଳି ବଳିଷ୍ଠଧର୍ମୀ ଜାତୀୟ ଚେତନା ଭାବ ନଥିଲା ସତ, ଗଡ଼ଜାତ ଅଞ୍ଚଳରେ ପ୍ରଜାଙ୍କୁ ଶୋଷଣ, ନିର୍ଯ୍ୟାତନାର ହୃଦୟବିଦାରକ ଚିତ୍ର ଫୁଟିଉଠିଛି ଏଥିରେ । 'ପଦ୍ମମାଳୀ'କୁ ଲେଖକ ଇଂରାଜୀରେ 'Historical Romance' ବୋଲି କହି ଓଡ଼ିଆରେ ନାମୋଲ୍ଲେଖ କରିଛନ୍ତି 'ଐତିହାସିକ ଉପନ୍ୟାସ' । ପଦ୍ମମାଳୀ ସମ୍ପର୍କରେ 'ବାଲେଶ୍ୱର ସମ୍ବାଦ ବାହିକା' ତାଙ୍କର ୧୮୮୯ ମସିହା ମେ ମାସ ୨ ତାରିଖ ସଂଖ୍ୟାରେ ଲେଖିଥିଲେ –"ପ୍ରକୃତ ଘଟଣା ସମ୍ପର୍କିତ କୌଣସି ଉପନ୍ୟାସ ଅବଧି ଓଡ଼ିଆ ଭାଷାରେ ପ୍ରଚାରିତ ହୋଇ ନଥିବାରୁ, ଉମେଶବାବୁଙ୍କ ଏହି ପ୍ରଥମ ଉଦ୍ୟମଟି ବିଶେଷ ପ୍ରଶଂସନୀୟ । ଏହି ଖଣ୍ଡିକୁ ଓଡ଼ିଶାର ପ୍ରଥମ ଘକୁଙ୍ଗରକ୍ଷ କହିଲେ ଅତ୍ୟୁକ୍ତି ହେବନାହିଁ ।"(୯) ସମସ୍ତ ବାଦବିବାଦ, ଆଲୋଚନା ସମାଲୋଚନା ମଧ୍ୟରେ ଆମକୁ ସ୍ୱୀକାର କରିବାକୁ ହେବ ଯେ, 'ପଦ୍ମମାଳୀ' ଉପନ୍ୟାସ ସାହିତ୍ୟ ଜଗତର କେବଳ ପ୍ରଥମ କୁଆଁତାରା ନଥିଲା, ପରବର୍ତ୍ତୀ କାଳରେ ଉପନ୍ୟାସ ସୃଷ୍ଟି ପାଇଁ ପ୍ରେରଣା ଯୋଗାଇଥିଲା ।

## ସଙ୍କେତ ସୂଚୀ


୧. ମିଶ୍ର, ନରେନ୍ଦ୍ରନାଥ : ଆଧୁନିକ ଓଡ଼ିଆ କଥା ସାହିତ୍ୟ, ପୃ.୧୩୫
୨. ବେହେରା, କୃଷ୍ଣଚରଣ : ଓଡ଼ିଆ ଉପନ୍ୟାସ, ପୃ.୧୨୦
୩. ମହାନ୍ତି, ସୁରେନ୍ଦ୍ର : ଫକୀରମୋହନ ସମୀକ୍ଷା, ପୃ.୧୧
୪. ଦାଶ, କୁଞ୍ଜବିହାରୀ : ସମାଲୋଚନା, ପୃ.୩୮
୫. ସେନାପତି, ଫକୀରମୋହନ : ଉତ୍କଳ ଭ୍ରମଣଂ, ପୃ.୪୨
୬. ମହାନ୍ତି, ବଂଶୀଧର : ଅଭିଭାଷଣ, ପୃ.୧୭
୭. ବେହେରା, କୃଷ୍ଣଚରଣ : ଓଡ଼ିଆ ଉପନ୍ୟାସ, ପୃ.୧୩୩-୧୩୪
୮. ମିଶ୍ର, କ୍ଷେତ୍ରମୋହନ : କେନ୍ଦୁଝର, ପୃ.୫୬
୯. ସାମନ୍ତରାୟ, ନଟବର: ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦), ପୃ.୯୧-୯୨